# ଚତୁର ବୁଦ୍ଧି ମନ୍ଦ ବୁଦ୍ଧି

ବିପିନ ବିହାରୀ ଶତପଥି



# ଚତୁର ବୁଦ୍ଧି
# ଓ
# ମନ୍ଦ ବୁଦ୍ଧି

ଲେଖକ :
**ଶ୍ରୀ ବିପିନ ବିହାରୀ ଶତପଥୀ**
ଶିକ୍ଷକ, କବିସୂର୍ଯ୍ୟନଗର (ଗଞ୍ଜାମ)

ପ୍ରକାଶକ :
**ସତ୍ୟ ପ୍ରକାଶ**
ଅଶୋକନଗର, ବ୍ରହ୍ମପୁର-୪

ଏଥିରେ ଅଛି—



---

# ଚତୁର ବୁଦ୍ଧି ଓ ମନ୍ଦ ବୁଦ୍ଧି


ଲେଖକ : **ଶ୍ରୀ ବିପିନ ବିହାରୀ ଶତପଥୀ**
ଶିକ୍ଷକ, କବିସୂର୍ଯ୍ୟନଗର (ଗଞ୍ଜାମ)



ପ୍ରକାଶକ : **ସତ୍ୟ ପ୍ରକାଶ**
ଅଶୋକନଗର, ବ୍ରହ୍ମପୁର-୪

ମୁଦ୍ରଣ : **ସନ୍ତୋଷ ପ୍ରିଣ୍ଟର୍ସ**
ବ୍ରହ୍ମପୁର-୯

ପ୍ରକାଶ କାଳ : **ଶୀତଳ ଷଷ୍ଠୀ, ୧୯୯୧**

ମୂଲ୍ୟ : **ସାତ ଟଙ୍କା**



# କାଚ କାଚ, ମଣି ମଣି

ଆକାଶରେ ତୁମେ ଜହ୍ନମାମୁଁଙ୍କୁ ଦେଖ । ସେ ହେଉଛନ୍ତି ଚନ୍ଦ୍ର ଦେବତା । ଗରଧାରେ ଆମେ ତାଙ୍କୁ ଜହ୍ନମାମୁଁ ବୋଲି ଡାକୁ । ପବନ କୁଆଡେ ଆମ ଜହ୍ନମାମୁଁଙ୍କ ପୁଅ । ଏକଥା ମୁଁ କହୁନି, କି ତୁମେ କହୁନା । ଏହା ପୁରାଣରେ ଲେଖା ହୋଇଛି । ଆଉ, ଅମ ଜହ୍ନମାମୁଁଙ୍କ ଝିଅ କିଏ, ଜାଣିଛ ? ସେ ହେଉଛି ଝଡ଼ । ଏମିତ ପବନ ଓ ଝଡ ହେଲେ ନିଜ ଭାଇ ଭଉଣୀ ।

ପବନ ଶାନ୍ତ ଯେମିତ, ଧୀର ସ୍ଥିର ସିମିତ । ଖାଲି ସେତିକି ନୁହେଁ, ପର ଉପକାରରେ ସେ ସବୁବେଳେ ଲାଗି

ପଡ଼ିଥାଏ । ବୁଝି ବିଚାରି ସବୁକାମ କରେ । ସେଥିପାଇଁ ତାକୁ ସମସ୍ତେ ଭଲପାଆନ୍ତି । ଚନ୍ଦ୍ର ଦେବତାଙ୍କର ବି ସେ ବେଶ୍ ଗେହ୍ଲା ପୁଅ ।

ଆଉ, ଝଡ ? ସେ ବି ତ ଚନ୍ଦ୍ର ଦେବତାଙ୍କ ଝିଅ । ତାଙ୍କଭଳି ହେବା କଥା । କିନ୍ତୁ ତା ସ୍ୱଭାବ ଠିକ୍ ଓଲଟା । ତା ବୁଦ୍ଧି ଟିକିଏ ବଙ୍କା । ଯାହା ବୁଝିଥିବ, ସେଇଆ । ସହଜେ ତ ଭାରି ଖରଖରି । ଥିର ଚାଲି ସେ ଜାଣେନା । ଚାଲିଲା ତ ଖାଲି ଧୁମ୍‌ଧୁମ୍ । ଆଉ, ତା ପାଟି କଣ କମ୍ ? ସେ କେବେ ଥିର କଥା କହେନା । ହୋ ହୋ ରଡ଼ି ଛାଡେ । ଝଡ ନୁହେ ତ, ବାଇମୁଣ୍ଡି ! ଯେତେବେଳେ ଯାହା ମନ କରିବ, ତାହା କରିବ ହିଁ କରିବ । ଭଲ ହେଉ, କି ମନ୍ଦ ହେଉ । କିଏ ମରୁ କି ହଜୁ । ସେଥିକି ତା'ର ଖାତିର ନାହିଁ । ଦୟା କେମିତିକା ଜିନିଷ, ତା ଜନମଠଉଁ ସେ ଜାଣିନି । ଆମ ଜହ୍ନମାମୁଁଙ୍କ ଝିଅ ଏମିତି କେମିତି ହେଲା କେଜାଣି ! ସେଥିପାଇଁ ତାକୁ ଭଲ ପାଇବା ଦୂରେ ଥାଉ, ତା ନା କେହି ଧରନ୍ତିନି ।

କହିଲ ଦେଖି, ଏମିତିକା ଝିଅକୁ କୋଉ ବାପା ଅବା ଭଲ ପାଆନ୍ତା ? ଚନ୍ଦ୍ର ଦେବତା ତା ଉପରେ ସବୁବେଳେ ବିଗିଡନ୍ତି । କିନ୍ତୁ ଝଡ ନିଜର ଭୁଲ ବୁଝିପାରେନି । ଓଲଟି ବାପାଙ୍କ ଉପରେ ଖପା ହୁଏ । ଭାବେ, ପୁଅ ବୋଲି ବାପା ପବନ ଭାଇକୁ ଅଧିକ ସ୍ନେହ କରୁଛନ୍ତି । କିନ୍ତୁ ଝିଅ ବୋଲି ତାକୁ ଗେହ୍ଲା କରୁନାହାନ୍ତି । ଏକଥା ତାକୁ ଜମା ଭଲ ଲାଗୁନଥାଏ ।

ଏଟନେ ଝଡ଼ ହାଣ୍ଡିପରି ମୁହଁକରି ବାପାଙ୍କ ଆଗରେ ଯାଇ ଠିଆ ହେଲା। ତାକୁ ଦେଖି ଚନ୍ଦ୍ର ପଚାରିଲେ—କ'ଣ ମା', ଏମିତି ମୁହଁ କରିଛୁ କାହିଁକି? ତୋର କଣ ହୋଇଚି?

ଝଡ଼ ନାକଟରେ କାନ୍ଦି କାନ୍ଦି କହିଲା—ହେବ ଆଉ କ'ଣ, ବାପା? ମୁଁ ଭାବୁଛି, ମୁଁ ଝିଅ ହୋଇ ଜନମ ହେଲି କାହିଁକି? ମୋତେ ତୁମେ ଜମା ଭଲ ପାଉନା। ସବୁ ଆଦର ତମ ପୁଅ ଉପରେ ଅଜାଡ଼ି ଦେଉଛ। ମୁଁ ଭଲ କଲେ ମୋ ଦୋଷ। ଖରାପ କଲେ ଦୋଷ। ହେଲେ ଭାଇକୁ ଚାରିଖୁଣ ମାଫ୍। କାହିଁକି ନା, ସେ ପୁଅ। ସବୁଠି ପୁଅର ଆଦର ଝିଅକୁ ପଚାରେ କିଏ?

ଚନ୍ଦ୍ର ମୁରୁକି ହସା ଦେଇ କହିଲେ—ଆଲୋ ହୁଣ୍ଡି, ତୁ ତାହାହେଲେ ଏଇଆ ବୁଝିଛୁ! ପୁଅ ହେଉ, କି ଝିଅ ହେଉ, ବାପା ମା'ଙ୍କ ପାଖରେ ଦିହେଁ ସମାନ। ଝିଅମାନେ ତ ବାପା ମା'ଙ୍କର ଅଧିକ ଗେଲ୍ହା ହୁଅନ୍ତି।

ଏତିକି ବେଳେ ପବନ ଆସି ସେଠାରେ ପହଞ୍ଚିଲା। ସେ ଝଡ଼ର ମୁହଁକୁ ଚାହିଁଦେଇ ଫେଁ କିନା ହସିଦେଲା।

ପବନ ପଚାରିଲା—ଝଡ଼ ଏମିତି ମୁହଁ କରିଛି କାହିଁକି, ବାପା? ମୁହଁ ନୁହେ ତ, ଧାନସିଝା ହାଣ୍ଡି। କ'ଣ ହୋଇଛି ତା'ର?

ଚନ୍ଦ୍ର କହିଲେ—ନା, ତା'ର କିଛି ହୋଇନି। ଏମିତି ଟିକିଏ ଅଭିମାନ କରିଛି। ହଁ, ତୁ ଏଇନା ଆସିଗଲୁ, ଭଲ

ହେଲା । ତୁମ ଭାଇ ଭଉଣୀଙ୍କୁ ମୁଁ କାମଟିଏ ଦେଉଛୁ । ଦାଦାହେଁ ମଥା ଖଟାଇ କରବ । ଭଲକାମ ପାଇଁ ବଢ଼ିଆ ପୁରସ୍କାରଟିଏ ଦେବ । କାଚ କାଚ, ମଣି ମଣି, କାମବେଳେ ଚିନା ଜାଣି । ଦେଖେ, ଆମ ପୁଅ ଅଧିକ କାମିକା, କ ଝିଅ ।

ବାପାଙ୍କ ପାଟିରୁ କଥା ସରିଛି କି ନାହିଁ, ଝିଉ ଚେଙ୍ଗ ମାଛ ପରି ଆଗକୁ ଡେଇଁ ପଡ଼ିଲା । ତା ମନ ଭାରି ଖୁସି । ବଢ଼ିଆ ମଉକାଟାଏ ମିଳିଛି । ତାଠଉଁ କଣ ପବନଭାଇ ବଳେଇପିବ ? କାମକରି ବାପାଙ୍କୁ ଦେଖାଇ ଦେବ, କିଏ କାଚ, ଆଉ କିଏ ମଣି । ସେ ପୁରସ୍କାର ପାଇବ । ବାପାଙ୍କର ଗେଲୀ ଝିଅ ହେବ । ସେ ଚଞ୍ଚଳ ପଚାରି ଦେଲା—କି କାମ, ବାପା ?

ଚନ୍ଦ୍ର କହିଲେ—ସ୍ୱର୍ଗରେ ପାରିଜାତ ଫୁଲ ଥିବା ଜାଣିଛୁ ?

ଝିଉ କହିଲା—ଫୁଃ ! ଏଇ କଥାଟି ? ମୁଁ ଭଲଭାବେ ଜାଣେ । ଇନ୍ଦ୍ରଙ୍କ ବଗିଚାର ନାଁ ନନ୍ଦନ କାନନ । ସେଠି ପାରିଜାତ ଫୁଲ ଫୁଟେ ।

ଚନ୍ଦ୍ର ପବନକୁ ପଚାରିଲେ—ତୁ ଜାଣିଛୁ ? ପବନ କହିଲା—ପାରିଜାତ କଥା କିଏ ନ ଜାଣେ, ବାପା ? ସେଇ ଫୁଲଲାଗି ପରା ସ୍ୱର୍ଗର ନାଁ ଅଛି ।

ଚନ୍ଦ୍ର କହିଲେ—ହଁ, ମୁଁ ସେଇ ସରଗ ଫୁଲ ପାରିଜାତ କଥା କହୁଛି । ତମ ଦିହିଁଙ୍କ କାମହେଲା ଏଇଆ । ସ୍ୱର୍ଗକୁ

ଯିବ । ସେଠିକା ନନ୍ଦନ କାନନରେ ପହଞ୍ଚିବ । ପାରିଜାତ ଫୁଲ ଗଛ ଚାରିପାଖେ ସାତଥର ଘେରିମାରି ଫେରି ଆସିବ ।

ବାପାଙ୍କ କଥା ଶୁଣି ଝଡ କହିଲା—ଏଇଟା ଏମିତ କୋଉ ବଡ଼ କାମଟାଏ ! ମୁଁ ଅଟକା ବାହାରିଲି ।

ଏହା କହି ଝଡ ଆକାଶ ଆଡକୁ ମାଡି ଚାଲିଲା । ଓଃ, କି ବେଗରେ ଦୌଡ଼ୁଥାଏ ! ଚାହିଁଲେ ଆଖି ବୁଜି ହୋଇଯିବ ।



ଅଉ, ତା ରଡ଼ି କଣ କମ୍ ? କାନ ଅତଡା ପଡ଼ିଯିବ । ସେ ନନ୍ଦନ କାନନରେ ପହଞ୍ଚିଗଲା । ସେଠି ପାରିଜାତ ଫୁଲଗଛ ଚାରିପାଖରେ ଗଣି ଗଣି ସାତଥର ବୁଲି ଆସିଲା । ତା ପରେ ସେ ଆଗଭଳି ଛୁଟି ଆସିଲା ।

ବାପାଙ୍କ ପାଖରୁ ଫେରି ଆସୁଥାଏ ଝଡ଼ । ତା ଖୁସି ଦେଖେ କିଏ ? ଭାବୁଥାଏ—ଆଜି ବାପାଙ୍କୁ ମୋ କରାମତି ଦେଖାଇ ଦେବି । ପବନ ଭାଇଟା ଅଳସୁଆଙ୍କ ଓସ୍ତାଦ । ବସିଥିବ ତ ବସିଥିବ । କାମ କଲେ ବି ଚୁପ୍‌ଚାପ୍, ଧିରେ ଧିରେ । ଏବେ ସେ ସ୍ୱର୍ଗରେ ପହଞ୍ଚି ନଥିବ । ମୁଁ ଫେରି ଆସିଲିଣି । ମୁଁ ଆଗେ ବାପାଙ୍କ ପାଖରେ ପହଞ୍ଚିବି । ବାପା ଖୁସି ହୋଇ ମୋ ପିଠି ଥାପୁଡ଼େଇବେ । ବାଃ, ବାଃ କହିବେ । ପୁରସ୍କାର ଦେବେ । ଆଉ କେଉଁଣିକି ? ମୁଁ ହେବି ବାପାଙ୍କର ଗେହ୍ଲାଝିଅ ।

ଝଡ଼ କ'ଣ କରିଥିଲା, ଜାଣିଛ ? ତା ଚାଲି ଆଉ ରୂପ ଦେଖି ଜଗତର ଲୋକମାନେ ଛନିଆ ହୋଇଗଲେ । ସେମାନେ ପ୍ରାଣ ବିକଳରେ ଏଣେ ତେଣେ ଦୌଡ଼ିବାକୁ ଲାଗିଲେ । ଝଡ଼ର ବେଗରେ ଅନେକ ଘରର ଛପର ଉଡ଼ିଗଲା । କେତେ ଘର ଭାଙ୍ଗି ରୁଜି ଭୁଷୁଡ଼ି ପଡ଼ିଲା । ବଡ଼ ବଡ଼ ଗଛ ସବୁ ଟଳି ପଡ଼ିଲେ । ଝଡ଼ ମୁହଁରେ କେତେ ନାଆଁ କେତେ ପଶୁ, ପକ୍ଷୀ, ମଣିଷ, ଗଛ ଓ ପଥର ଦେହରେ ପିଟି ହୋଇ ମରିଗଲେ । ଧନ ଗଲା, ଜୀବନ ଗଲା । ହେଲେ ଝଡ଼ ଏ ସବୁଆଡ଼େ ଆଖି ଉଠାଇ ଚାହିଁଲା ନାହିଁ । ସିଏ ଭଲ ତ ଦୁନିଆ ଭଲ । କାହାର କଣ ହେଉ, ସେଥିରେ ତା'ର ଯାଏ ଆସେ କେତେ ? ପୁରସ୍କାର ପାଇବା ପାଇଁ ସେ ପାଗଳୀ ବନି ଯାଇଥାଏ ।

ଝଡ ବାପାଙ୍କ ପାଖକୁ ଆଗେ ଫେରି ଆସିଲା । କିନ୍ତୁ ତା ଦେହଟା ଭରି ଅସନା ଦିଶୁଥାଏ । ସାଥିରେ ବୋହି ଆଣିଥାଏ କଣ ନାହିଁ କଣ – ଡାଳ ପତ୍ର, କାଠକୁଟା, ଧୂଳି ପାଉଁଶ ଓ ଯାବତୀୟ ଅସନା ଜିନିଷ। ଏ ସବୁ ଚନ୍ଦ୍ରଙ୍କ ଗୃହଟଟେ ବସ୍ତିଇ ହୋଇ ପଡ଼ିଥାଏ । ଅସନା ଜିନିଷ



ପଡ଼ିବାରୁ ଜାଗାଟା କିମିତି ଗନ୍ଧଉଥାଏ । ଚନ୍ଦ୍ର ନାକରେ ହାତ ଦେଇ ବସିଲେ । ତାଙ୍କ ଦେହରେ ଧୂଳିର ବୋଳ ବସି-ଯାଇଥାଏ । ସେ ମନେ ମନେ ଝଡ ଉପରେ ରାଗିଯାଇଥାନ୍ତି ।

ତେଣେ ପବନ କଣ କଲା, ଜାଣିଛ ? ସେ ପାରିଜାତ ଫୁଲ ଗଛକୁ ସାତଥର ଘେରି ମାରି ଫେରୁଥାଏ । ସରଗ

ପୁରର ଫୁଲମାନଙ୍କୁ କୁତୁ କୁତୁ କରି ଦେଉଥାଏ । ସେମାନେ ଝିଲି ଖିଲି ହୋଇ ହସି ଉଠୁଥାନ୍ତି । ଆଉ ପବନ ଦେହକୁ ଛାଡ଼ି ଦେଉଥାନ୍ତି ନିଜ ଦେହର ସୁବାସକୁ କିଛି କିଛି । ସବୁ ଫୁଲର ମହକ ଦେହରେ ବୋଳି ହୋଇ ଆସୁଥାଏ ପବନ ।

ମର୍ତ୍ତ୍ୟପୁର ପଡ଼ିଲା । ଅସୁମାରି ଫୁଲ ସେଠି । ପବନ ଥିରି ଥିରି ଚାଲିଥାଏ । ସମସ୍ତଙ୍କୁ ଛୁଇଁ ଛୁଇଁକା ଯାଉଥାଏ । ଫୁଲଗଛମାନେ ମଥା ହଲାଇ ନାଚୁଥାନ୍ତି । ଭଅଁରମାନେ ମନ ଫୁଲିଣିଆ ଗୀତ ଗାଉଥାନ୍ତି । ପକ୍ଷୀମାନେ ଡେଣା ହଲାଇ ଉଡ଼ି ଯାଉଥାନ୍ତି । ପଶୁମାନେ ଖୁସିରେ ଡ଼ିଆଁ ମାରୁଥାନ୍ତି । ମଣିଷମାନଙ୍କ ଆନନ୍ଦ କହିଲେ ନ ସରେ । ପବନ ସବୁରି ଫୁଲର ବାସନା ଟିକେ ଟିକେ ସମସ୍ତଙ୍କୁ ଦେଇ ଯାଉଥାଏ । ସଭିଏଁ ତାକୁ ବାହାବା କରୁଥାନ୍ତି ।

ବାପାଙ୍କ ପାଖରେ ପହଞ୍ଚିଲା ପବନ । ସେ ଆସିଲାଠଉଁ ସବୁଆଡ଼େ ମହକ ଉଠିଲା । ଚନ୍ଦ୍ର ଦେବତା ଖୁସିହୋଇ ତା' ପିଠି ଥାପୁଡ଼େଇ କହିଲେ— ସାବାସ୍ !

ହୃଦୟ କୋମଳ ମଧୁର ବାଣୀ,
ଭଲଗୁଣେ ସିନା ଜଗତ ଜିଣି ।
ସୁବାସ ବତରି ମୋହିଲେ ମନ,
ପୂଜିବେ ମରତେ ସକଳ ଜନ ।

ଆଚ୍ଛା, କହିଲୁ, ଝଡ଼, ତମ ଦହିଙ୍କ ଭିତରୁ ସତରେ କିଏ ପୁରସ୍କାର ପାଇବା କଥା ? ତୁ, ନା ପବନ ? ତୁ ଆସିଲୁ, ପବନ ଆସିଲା । ସାଙ୍ଗରେ କିଏ କଣ ଆଣିଛ, ଦେଖ । ଏବେ ବୁଝ, ପବନ ଓ ତୋ ଭିତରେ ତଫାତ୍ କେତେ ? ସଭିଏଁ କାହିଁକି ପବନର ଆଦର କରନ୍ତି, ଆଉ ତୋତେ ନାକ ଟେକନ୍ତି ।

ଏ କଥାରୁ କ'ଣ ଆମର କିଛି ଶିଖିବାର ନାହିଁ ? ନିଶ୍ଚୟ ଅଛି । ପୁଅ ହୁଅ କି ଝିଅ ହୁଅ, ପବନ ପରି ହୁଅ । ପର ଉପକାରରେ ଲାଗିପଡ଼ । ତାହାହେଲେ ସଭିଏଁ ତୁମକୁ ଧନ୍ୟ ଧନ୍ୟ କହିବେ । ତୁମ ବାପ ମା'ଙ୍କ ଟେକ ରହିବ ।





# ଚତୁର ବୁଦ୍ଧି ଓ ମନ୍ଦ ବୁଦ୍ଧି

ବହୁତ ଦିନ ତଳର ଘଟଣା । ସେତେବେଳେ ଉଦୟପୁର ରାଜ୍ୟର ସୀମାକୁ ଲାଗି ଘଞ୍ଚ ଜଙ୍ଗଲ ଥିଲା । ଜଙ୍ଗଲ ଭିତରେ ଅଣଓସାରିଆ ରାସ୍ତାଟିଏ । ସେହି ରାସ୍ତା କଡରେ ଝଙ୍କାଳିଆ କଦମ୍ବ ଗଛଟିଏ ଥିଲା । ସେଠାରୁ ଅଳ୍ପ ଦୂରରେ ଝରଣାଟିଏ କୁଳୁକୁଳୁ ହୋଇ ବହି ଯାଉଥିଲା । ଦେଖିବାକୁ ସ୍ଥାନଟି ଭାରି ମନୋରମ । ସେହି କଦମ୍ବ ଗଛରେ କୋଇଲିଟିଏ ବସା ବାନ୍ଧି ରହିଥାଏ । ହାଲିଆ ହୋଇ ବାଟୋଇମାନେ ସେହି କଦମ୍ବ ଗଛ ଛାଇରେ ଥକା ମାରନ୍ତି । ଝରଣାର ଥଣ୍ଡା

ପାଣି ପିଅନ୍ତି । କୋଇଲି ମିଠା ମିଠା ଗୀତ ଗାଇ ବାଟୋଇ-ମାନଙ୍କୁ ଶୁଣାଏ । ବାଟୋଇମାନେ ଖୁସି ହୋଇ କୋଇଲିର ଢେର୍ ପ୍ରଶଂସା କରନ୍ତି ।

ଦିନେ ଉଦୟପୁରର ଯୁବରାଜ ବିଜୟକୁମାର ସେହି ବାଟ ଦେଇ ଫେରୁଥିଲେ । ଶିକାର ପାଇଁ ଏଣେ ତେଣେ ବୁରିବୁଲି ସେ ଥକି ପଡ଼ିଥିଲେ । ଏଣୁ ସେ ଝରଣାର ପାଣି ପିଇ ସେହି ଗଛ ଛାଇରେ ଥକା ମାରିଲେ । ଯୁବରାଜଙ୍କୁ ଦେଖି କୋଇଲି ଗାଇବାକୁ ଲଗିଲା—

ଦୁନିଆରେ କିଏ ସେନେହି ତୁଲ,
ସେନେହର କିଏ କଳିବ ମୂଲ ।
ଗଛ ତଳେ ତଳେ ନ ଥିଲେ ଛାଇ,
ଆରାମ କିଏ କି ପାଆନ୍ତା, ଭାଇ !

କୋଇଲିର ମଧୁର ଗୀତରେ ଯୁବରାଜଙ୍କ ପୀଡ଼ା ଦୂର ହୋଇଗଲା । ସେ ଖୁସି ହୋଇ କହିଲେ—କୋଇଲି, ତୁମ କଣ୍ଠସ୍ୱର ଭାରି ମଧୁର । ମୁଁ ଅନେକ ଗାୟକଙ୍କ ଗୀତ ଶୁଣିଛି । କିନ୍ତୁ ତମ ସରି କେହି ହେବେ ନାହିଁ । ମୁଁ ଯଦି ଆଜି ରାଜା ହୋଇଥାନ୍ତି, ତେବେ ତୁମକୁ ସବୁଠାରୁ ବଡ ଗାୟିକା ଉପାଧି ଦେଇଥାନ୍ତି ।

କୋଇଲି କହିଲା—ଯୁବରାଜ ! ଏଇ ଗୀତଟି ତ ଗୋଟିଏ ସାଧାରଣ ଗୀତ । କିନ୍ତୁ ପୃଥିବୀର ସବୁଠାରୁ ଭଲ ଗୀତ ମୁଁ ଜାଣେ । ଆପଣ ଯେଉଁ ଦିନ ରାଜା ହେବେ, ସେହି ଦିନ ସେହି ଗୀତଟି ଗାଇ ଶୁଣାଇବି ।

ଯୁବରାଜ କହିଲେ—ତାହା ହେଲେ ଆଜିଠଉଁ ମୋର ନିମନ୍ତ୍ରଣ ରହିଲା ।

ଏହାପରେ ସେ ନିଜ ଗଳାରୁ ରତ୍ନ ହାରଟି ବାହାର କରି କୋଇଲିକୁ ଉପହାର ଦେଲେ । ତା ପରେ ଘୋଡାରେ ଚଢ଼ି ଉଆସକୁ ଫେରିଲେ ।

ପାଖ ଆମ୍ବ ଗଛ ଉପରେ ବସି ମନ୍ଦବୁଦ୍ଧି ଏକଆଖିଆ ଡାମରା କାଉ ଏ ସବୁ ଦେଖୁଥିଲା । ସେ ହିଂସାରେ ଜଳିଗଲା । ସେ ଭାବିଲା—ଯେ କୌଣସି ଉପାୟରେ ହେଉ, କୋଇଲି ଠାରୁ ଗୀତ ଗାଇବା ଶିଖି ନେବ । ତା ପରେ ଯାଇ ରାଜାଙ୍କ ଆଗରେ ଗୀତ ଗାଇବ । ରାଜା ଖୁସି ହୋଇ ତାକୁ ପୁରସ୍କାର ଦେବେ ।

ଏହା ଭାବି ସେ କୋଇଲି ପାଖକୁ ଗଲା । ତାକୁ କଅଁଳେଇ ଡାକିଲା—ସୁନା ଭଉଣୀ, ମୋତେ ଚିହ୍ନି ପାରୁଛୁ ?

କୋଇଲି କହିଲା—ନାହିଁ, ମୁଁ ତମକୁ କେଉଁଠି ଦେଖିଲା ପରି ତ ମନେ ହେଉ ନାହିଁ ।

ଏକଆଖିଆ କହିଲା—ମୁଁ ପରା ତୋର ବଡଭାଇ । ତୋ ମା' ମୋ ମା' ଦି'ଭଉଣୀ । ମୋ ମା' ଟିକିଏ ଡେଙ୍ଗୀ ଥିଲା । ତେଣୁ ମୁଁ ଡେଙ୍ଗା ହେଲି । ତୋ ମା' ଟିକିଏ ଗେଡୀ ଥିଲା । ତେଣୁ ତୁ ଗେଡୀ ହେଲୁ । ବାକି ରୂପ ବର୍ଣ୍ଣ ସବୁ ଏକା, ଏଇଥର ବୁଝିଲୁ ? ତୁ ପରା ମୋର ମାଉସୀ ଝିଅ ଭଉଣୀ ।

କୋଇଲି କହିଲା—ଆଚ୍ଛା, ଭାଇ, ଏତେ ଦିନ ପରେ କେମିତି ମୋ କଥା ମନେ ପଡ଼ିଲା ?

କାଉ କହିଲା - ଅଲୋ, ମୁଁ ପରା ତତେ ଖୋଜି ପାଉ ନ ଥିଲି । ମୋ ମା' ତୋ ଠାରୁ ଆହୁରି ସୁନ୍ଦର ଗୀତ ଗାଇ ଜାଣିଥିଲା । ମରିବା ଆଗରୁ ସେ ତୋ ମା'ଙ୍କୁ ଗୀତ ଗାଇବା ଶିଖେଇ ଦେଇ ଯାଇଥିଲା । କାରଣ ସେତେବେଳେ ମୁଁ ଛୋଟ ଥିଲି । ହେଲେ ସେ ମୋତେ କହି ଯାଇଥିଲା–ପୁଅରେ, ମୁଁ ତ ମରିଯିବି । ତୁ ଯେତେବେଳେ ବଡ ହେବୁ, ମାଉସୀ ଠାରୁ ଗୀତ ଗାଇବା ଶିଖିନେବୁ । ହେଲେ, ମାଉସୀ ତ ନାହାନ୍ତି । ତୁ ଏବେ ମୋତେ ଗୀତ ଗାଇବା ଶିଖେଇ ଦେ' ।

କୋଇଲି ତ ଭାରି ଚାଲାକ୍ । ସେ ମନ୍ଦବୁଦ୍ଧି ଏକ ଆଖିଆର ଚାଲ୍ ବେଶ୍ ବୁଝି ପାରିଥିଲା । ତେଣୁ ସେ କହିଲା— ଓଃ, ଏଇ କଥା ! କିନ୍ତୁ କଣ କରିବି ଭାଇ । ମୋ ମା' ମଲାବେଳେ କହି ଯାଇଥିଲା—ସମସ୍ତଙ୍କୁ ବିଶ୍ୱାସ କରିବୁ । କିନ୍ତୁ କଣା, ଟେରା, ଛୋଟା, କେମ୍ପା ଏବଂ ଲାଙ୍ଗୁଳ ଖଣ୍ଡିଆଙ୍କୁ ଜମା ବିଶ୍ୱାସ କରିବୁ ନାହିଁ ।

ଏତିକି କହି ସେ ଫର୍ର୍ କିନା ଆକାଶକୁ ଉଡ଼ିଗଲା । କୋଇଲିର କଥା ଡାମରା କାଉ ଦେହରେ ଶରପରି ଗଳି ଗଲା । ସେ ରାଗିଯାଇ ପ୍ରତିଶୋଧ ନେବା ପାଇଁ ଶପଥ କଲା ।

ଏ ଭିତରେ କିଛି ଦିନ ବିତିଗଲା । କୋଇଲିର ଅଣ୍ଡା ଦେବା ସମୟ ଆସିଲା । ଦିନେ ବାହାରେ ସେ ଏକ ସୁନ୍ଦରଅଣ୍ଡା ଦେଇ ଆହାର ଖୋଜିବାକୁ ଚାଲିଗଲା । ଏକଆଖିଆ ଡାମରା

କାଉ ଛ ସୁଯୋଗ ଉଣ୍ଡୁ ଥିଲା, କେମିତ କୋଇଲି ଉପରେ ଦାଉ ସାଧିବ । କୋଇଲ ଉଡ଼ିଯିବା ଦେଖି ତା ଅଣ୍ଡାଟିକୁ ଗ୍ଟେଇ ଆଣି ନିଜ ବସାରେ ରଖିଦେଲା । ତାର ସ୍ତ୍ରୀ ଆସିଲାରୁ ତାକୁ ସବୁକଥା କହିଲା । ଏକଆଖିଆର ସ୍ତ୍ରୀ କହିଲା—ଆଉ ବିଳମ୍ବ କାହିଁକି ? ଚାଲ, କୋଇଲ ଅଣ୍ଡାଟିକୁ ନଷ୍ଟ କରି ତା' ବସା ପାଖରେ ଫିଙ୍ଗିଦେଇ ଆସିବା ।



ଏକଆଖିଆ କୋଇଲ ଅଣ୍ଡା ଗ୍ଟେଇ ଆଣି ତା ସ୍ତ୍ରୀ ଦେଇଥିବା ଅଣ୍ଡାରେ ମିଶାଇ ରଖିଦେଇଥିଲା । କେଉଁଟି କୋଇଲି ଅଣ୍ଡା ଓ କେଉଁଟି ନିଜ ଅଣ୍ଡା ଆଦୌ ଚିହ୍ନି ପାରିଲା ନାହିଁ । କରିବ କ'ଣ ? ସେମାନଙ୍କ ମଧ୍ୟରେ ଧ୍ୱଲେଣି ପଡ଼ିଲା ।

ଏକଆଖିଆର ସ୍ତ୍ରୀ କହିଲା—ଏତେ ଚିନ୍ତା କାହିଁକି ? ମୁଁ ଅଣ୍ଡାଗୁଡ଼ିକ ଉଷୁମାଇବି । ସେଥିରୁ ଛୁଆ ବାହାରିବେ । ଛୁଆମାନେ ବଡ଼ହେଲେ ସେମାନଙ୍କ ଦେହରେ ପର କଅଁଳିବ । ସେତେବେଳେ କୋଇଲି ଛୁଆକୁ ଚିହ୍ନିବାରେ ଆଉ ଅସୁବିଧା ହେବ ନାହିଁ ।

ଏକଆଖିଆ କହିଲା—ଠିକ୍ କହିଛୁ, ସେଇଆ କର ।

ଏକଆଖିଆର ସ୍ତ୍ରୀ ଅଣ୍ଡାଗୁଡ଼ିକୁ ଉଷୁମେଇଲା । ସେଥିରୁ ଛୁଆ ବାହାରିଲେ । କିଛି ଦିନ ପରେ କୋଇଲି ଛୁଆ ଏବଂ କାଉ ଛୁଆଙ୍କ ଦେହରେ ପର କଅଁଳିଲା । କିନ୍ତୁ ପର କଅଁଳିଲା ପରେ ବି କାଉ ଛୁଆ ଏବଂ କୋଇଲି ଛୁଆ ଏକା ପରି ଦେଖା ଗଲେ । ଏଣୁ ପୁଣି ଦିହିଙ୍କ ମଧ୍ୟରେ ଗୋଳେଇ ପଡ଼ିଲା ଏବେ କୋଇଲି ଛୁଆକୁ ଚିହ୍ନିବା କେମିତି ?

ଏକଆଖିଆର ସ୍ତ୍ରୀ ଭାବି ଭାବି କହିଲା ଆଉ କିଛି ଦିନ ଅପେକ୍ଷା କରିବା । ଯେତେବେଳେ କୋଇଲି ଛୁଆ କଥା କହିବା ଆରମ୍ଭ କରିବ, ସେତେବେଳେ ଆପେ ଜଣା ପଡ଼ିଯିବ ।

ଏଣେ ମା’ କୋଇଲି ସେହିଦିନ ଠାରୁ କାନ୍ଦି କାନ୍ଦି ତା’ ଅଣ୍ଡାକୁ ଖୋଜି ବୁଲୁଥାଏ । ଦିନେ ସେ ବୁଲି ବୁଲି ଆସି କାଉବସା ପାଖରେ ଥିବା ଏକ ପିପ୍ପଳ ଗଛ ଉପରେ ବସି ମନ ଦୁଃଖରେ ଗାଉଥାଏ—

ମୋ ଟିକି ଅଣ୍ଡା, ମୋ ଟିକି ଅଣ୍ଡା
କିଏ ନେଇ ଗଲା ହିଣ୍ଡିକି ହିଣ୍ଡା ।

କେଉଁଠି ରହିଲୁ କାହାର ଘରେ
ବିକଳେ କାନ୍ଦୁନ ନିତ ମୁଁ ଝୁରେ ।

ଏକଆଖିଆ ଆଉ ତା ସ୍ତ୍ରୀର କଥାଭାଷାରୁ କୋଇଲି ଛୁଆର ଆଗ କଥା ମନେ ପଡ଼ିଗଲା । ସେ ଜାଣି ପାରିଲା, ଏଇ ହେଉଛି ତାର ମାଆ । ଏଣୁ ସେ ଅଧୀର ହୋଇ ଗାଇଲା—

ମାଆ ଲୋ— ମାଆ
ମୁଁ ଏକା ତୋର ହଜିଲା ଛୁଆ
କେତେ କାଳେ ଭେଟ ହୋଇଲା ଆହା ।

ଏହାପରେ ସେ ମାଆ ପାଖକୁ ଉଡ଼ିଗଲା । ମା' କୋଇଲି ଛୁଆ ସହିତ ଖୁସି ମନରେ ଆକାଶକୁ ଉଡ଼ିଗଲା ।

ଏକଆଖିଆ ଏବଂ ତା ସ୍ତ୍ରୀ ଆହାର ସଂଗ୍ରହ କରି ବସାକୁ ଫେରି ଯେତେବେଳେ ଏକଥା ଜାଣିଲେ, ରାଗରେ ସେମାନଙ୍କୁ ଖୋଜିବାକୁ ଲାଗିଲେ । କିନ୍ତୁ ଶେଷରେ ନିରାଶ ହୋଇ ବସାକୁ ଫେରିଲେ ।

ମା' କୋଇଲି ଏବଂ ତା ଛୁଆ ଅନେକ ଦୂର ଉଡ଼ିଗଲା ପରେ ଗୋଟିଏ ଗଛ ଉପରେ ଯାଇ ବସିଲେ । ଏକଆଖିଆ ଓ ତା' ସ୍ତ୍ରୀ ମଧ୍ୟରେ ହୋଇଥିବା କଥାଭାଷାକୁ କୋଇଲି ଛୁଆ ମାଆ ଆଗରେ ବର୍ଣ୍ଣନା କଲା । ସବୁ ଶୁଣି ସାରି ମା' କୋଇଲି ଭାବିଲା—କାଉ ନିଶ୍ଚୟ ସବୁବେଳେ ମୋର ଶତ୍ରୁତା କରିବ । ବସା ଖୋଜିବ । ଅଣ୍ଡା ଦେଲେ ନଷ୍ଟ କରିବ ।

ଏଣୁ ସେହିଦିନ ଠାରୁ ସେ ଯେତେ ଅଣ୍ଡା ଦିଏ, ସେ ସବୁ କାଉ ବସାରେ ନେଇ ରଖିଦେଇ ଆସେ । ମନ୍ଦବୁଦ୍ଧି କାଉ କୋଇଲି ଅଣ୍ଡାକୁ ନିଜ ଅଣ୍ଡା ଭାବି ଯତ୍ନ ନିଏ । ଅଣ୍ଡାରୁ ଛୁଆ ହୁଏ । ଛୁଆ ବଡ ହୋଇ ଉଡ଼ିବା ଶିଖେ । ଯେତେ ବେଳେ ମା'ର ଗୀତ ଶୁଣେ ସେ ବି ଗୀତ ଗାଇବା ଆରମ୍ଭ କରେ । ଆଉ ତା ମା' ପାଖକୁ ଉଡ଼ିଯାଏ । ସେତେବେଳେ କାଉ କୋଇଲି ଛୁଆକୁ ଚିହ୍ନିପାରେ । ରାଗରେ ତାକୁ ଧରି ମାରିବା ପାଇଁ ଗୋଡାଏ । କିନ୍ତୁ ସେ କୋଇଲି ଛୁଆକୁ ଧରି ପାରେନାହିଁ । ମା' କୋଇଲି ତା ଛୁଆକୁ ସାଙ୍ଗରେ ନେଇ ବହୁତ ଦୂରକୁ ଉଡ଼ି ଚାଲିଯାଏ । କାଉ କରିବ କ'ଣ ? ନିଜକୁ ଧିକ୍‌କାର କରି କାନ ମୁଣ୍ଡ ଆଉଁସି ଚୁପ୍ ରହେ ।

ଏଇଥିରୁ ବୁଝିଲ ତ ? ଅନ୍ୟ ପ୍ରତି କେବେ ହିଂସା କରିବ ନାହିଁ । ଅନ୍ୟର ମନ୍ଦ ଚିନ୍ତା କରିବ ନାହିଁ । ଅନ୍ୟ ପାଇଁ ଗାତ ଖୋଳିଲେ ନିଜେ ସେହି ଗାତରେ ପଡ଼ିବା ସାର ହେବ ।





# ପ୍ରକୃତ ବନ୍ଧୁ

ମାଟି ତଳେ କଟିମିଟିଆ ଅନ୍ଧାର । ତା ଭିତରେ ଦୁଇଟି ମଞ୍ଜି କଥାଭାଷା ହେଉଥିଲେ । ସେଥିରୁ ଗୋଟିଏ ମଞ୍ଜି କହିଲା—ଏ ସାଙ୍ଗ, ଚାଲ, ଆମେ ମାଟି ଉପରକୁ ଉଠିଯିବା ।

ଅନ୍ୟ ମଞ୍ଜିଟି ଭାରି ଡରକୁଳା । ସେ ପ୍ରଥମ ମଞ୍ଜିର କଥାଶୁଣି କହିଲା—କିଲୋ, ତୁ ନିହାତି ଓଲୀଟାଏ ନା କ'ଣ ? ଆମେ ତ ମାଟି ଭିତରେ ବେଶ୍ ଆରାମରେ ଅଛେ । କତରାକୁ ଯିବା କିଆଁ, ଗତର ଖଟିବା କିଆଁ ? ଏଣୁ ପାଟିତୁଣ୍ଡ ନ କରି ଚୁପ୍‌ଚାପ୍ ଶୋଇପଡ଼ ।

ପ୍ରଥମ ମଞ୍ଜି କହିଲା--ତୁ ଯିବ ନ ଯିବୁ, ନ ଯା'। ମୁଁ କିନ୍ତୁ ଅଲବତ୍ ଯିବ। ଏ ଅନ୍ଧାରୁଆ କୋଠରୀ ଭିତରେ ରହି ମୁଁ ଅଣନିଃଶ୍ୱାସୀ ହୋଇ ପଡ଼ିଲିଣି। ମୁଁ ଏଠି ଜମା ରହିପାରିବ ନାହିଁ।

ଏହା କହି ପ୍ରଥମ ମଞ୍ଜି ମାଟି ଉପରକୁ ଟିକେ ମୁହଁ ବଢ଼ାଇଲା।

ଏହା ଦେଖି ଡରକୁଳା ପାଟିକରି ଉଠିଲା—ଆରେ ଲୋ, ମୋ କଥା ମାନ। ପଦାକୁ ମୁହଁ କାଢ଼ନା କହୁଛି। ପଦାକୁ ମୁହଁ ବାହାର କଲେ, ସେମାନେ ଛଟେ ଦଳ ଚକଟି ମାରିଦେବେ। ଶେଷରେ ପସ୍ତେଇବୁ।

କିନ୍ତୁ ପ୍ରଥମ ମଞ୍ଜି ଡରକୁଳାର କଥାରେ କାନ ଦେଲା ନାହିଁ। ତାର ଏକା ଜିଦ୍, ସେ ମାଟି ଉପରକୁ ଉଠିବ ହିଁ ଉଠିବ। ନୂଆ ଆଲୋକ ପାଇବ। ନୂଆ ଦୁନିଆ ଦେଖିବ।

ସେ ସଙ୍ଗେ ସଙ୍ଗେ ଅଙ୍କୁର ମେଲିଦେଲା। ମାଟି ଭିତରୁ ପଦାକୁ ବାହାରି ପଡ଼ିଲା ଗଜାଟିଏ। ମାଟି ଉପରକୁ ମୁହଁ ଟେକି ଦେଖିଲା, ବାହାରେ ଚାରିଆଡ଼େ ଆଲୁଅର ଢେଉ ଖେଳୁଛି। କେତେ ନା କେତେ ଗଛ ଲତା। ଆକାଶକୁ ମୁଣ୍ଡ ଟେକି ସେମାନେ ଠିଆ ହୋଇ ରହିଛନ୍ତି। କେତେ ଜୀବଜନ୍ତୁ ମନ ଆନନ୍ଦରେ ବୁଲାବୁଲି କରୁଛନ୍ତି। ଉପରେ ନୀଳ ଆକାଶ। ପୂର୍ବ ଦିଗରେ ସୂର୍ଯ୍ୟ ଦେବତା ନାଲି ପାଟ ପିନ୍ଧି ଧୀରେ ଧୀରେ ଉପରକୁ ଉଠୁଛନ୍ତି। ମଞ୍ଜିର ମନ ଆନନ୍ଦରେ କୁରୁଳି ଉଠିଲା।

ସେ ପ୍ରଥମେ ସୂର୍ଯ୍ୟ ଦେବତାଙ୍କୁ ଜୁହାର କଲା। କହିଲା—ହେ ସୂର୍ଯ୍ୟ ଦେବତା ! ମୁଁ ଆଜି ଏ ଜଗତକୁ ନୂଆ ଆସିଛି। ମୁଁ ଗୋଟିଏ ଅବୋଧ ଶିଶୁ। ମୋ ପ୍ରତି ତୁମେ ଦୟାକର।

ସୂର୍ଯ୍ୟ ଦେବତା ତା ଆଡକୁ ଚାହିଁଲେ। ସେ ମୁରୁକ ମୁରୁକ ହସୁଥାନ୍ତି। ତା ପରେ ତା ଉପରକୁ ମେଞ୍ଚା ମେଞ୍ଚା ଆଲୁଅ ଛାଟିଦେଲେ। ମଞ୍ଜିଟି ଆଲୁଅ ପାଇ ସତେଜ ହୋଇ ଉଠିଲା।

ପବନ କେଉଁଠି ଥିଲା କେଜାଣି, ଏତିକିବେଳେ ସେ ଆସି ତୁହାକୁ ତୁହା ତା' ଦେହରେ ପିଟି ହେଲା। ତା ଚାରିପଟେ ଗୁଡେଇ ତୁଡ଼େଇ ହୋଇ ତା ସହିତ ଖେଳ କୌତୁକ ଜମାଇ ଦେଲା। ହଠାତ୍ କାତୁକୁତୁ କରି ତାକୁ ଟିକିଏ ଗେଲ କରିଦେଲା। ଅଙ୍କୁର ନିଜକୁ ସମ୍ଭାଳି ନ ପାରି ଫେଁ-କିନା ହସି ପକାଇଲା।

ସେ ହସିବା ସାଙ୍ଗେ ସାଙ୍ଗେ କଣ ହେଲା ଜାଣ ? ତାର ଦୁଇ ପାଖରୁ ଦୁଇଟି ପତ୍ର ଆପେ ମେଲି ହୋଇ ପଦାକୁ ବାହାରି ଆସିଲା। ସେ ତାର ସେହି ଦୁଇପତ୍ର ସାହାଯ୍ୟରେ ପବନକୁ ଜାବୁଡ଼ି ଧରିବାକୁ ଚାହିଁଲା। କିନ୍ତୁ ପବନ ତାକୁ ଧରା ଦେଲାନି। ଟିକିଏ ଦୂରକୁ ଘୁଞ୍ଚିଗଲା। ଅଙ୍କୁର ମନ ଦୁଃଖରେ ମୁହଁ ଶୁଖେଇ ଦେଲା।

ଏହା ଦେଖି ପବନ ହସି ହସି କହିଲା—ଦୁଃଖ କରୁଛୁ କି, ଭଉଣୀ ? ମୁଁ ସିନା ତୋ ସାଙ୍ଗରେ ମଜା କରୁଥିଲି।

ସତରେ କ'ଣ ମୁଁ ତୋ ଠାରୁ ଦୂରେଇ ଯିବ ବୋଲି ତୁ ଭାବୁଛୁ ? ତୁ ଜମା ମନଦୁଃଖ କରନା । ମୁଁ ଏମିତ ରୋଜ୍ ରୋଜ୍ ଆସିବ । ନିତ ଆମେ ଦିହେଁ ଲୁଚକାଳି ଖେଳ ଖେଳିବା । ମୋ ଯୋଗୁଁ ତୁ ନିଃଶ୍ୱାସ ପ୍ରଶ୍ୱାସ ନେବା ଆଣିବା କରିବୁ । ଧୀରେ ଧୀରେ ବଡ ହେବୁ ।

ପବନ ଓ ଅଙ୍କୁର ଦିହେଁ ହସ ଖୁସି ଓ ଖେଳ କୌତୁକରେ ମାତିଥିଲେ । ଏଣେ ଧୀରେ ଧୀରେ ସୂର୍ଯ୍ୟ ଦେବତା ମଥାନ ଉପରକୁ ଉଠିଲେଣି । ଗ୍ରୀଷ୍ମ ଖରା ମାରୁଥାଏ । ଅଙ୍କୁରଟିର ତାଳୁରୁ ତଳପା ଯାଏ ଜଳି ଉଠିଲା । ନାହିଁ ନଥିବା ଶୋଷ । ସେ ବିକଳରେ ପାଣି ଖୋଜିଲା । କିନ୍ତୁ ପାଣି କାହିଁ ?

ଅଙ୍କୁରର ବିକଳ ଦେଖି ମେଘ ମନରେ ଦୟା ହେଲା । ସେ କେଉଁଠି ଥିଲା କେଜାଣି, ଆଖି ପିଛୁଳାକେ ମାଡ଼ି ଆସିଲା । ସୂର୍ଯ୍ୟ ଦେବତାଙ୍କୁ ଘୋଡାଇ ପକାଇଲା । ତା ଉପରେ ତୁହାକୁ ତୁହା ପାଣି ଅଜାଡ଼ିଲା । ସେ ପାଣି ପେରେ ବରଫ ପରି ଥଣ୍ଡା । ଥଣ୍ଡା ପାଣି ପାଇ ଅଙ୍କୁରର ଜଳାପୋଡା କଟିଗଲା । ତାକୁ ବେଶ୍ ଆରାମ ଲାଗିଲା । ସେ ମେଘକୁ ଚାହିଁ କହିଲା – ତମେ ସତରେ କେତେ ଭଲ ! ତମ ଯୋଗୁଁ ସିନା ମୋର ଜୀବନ ରହିଲା ।

ମେଘ କହିଲା – ମୋ ନା ମଙ୍ଗଳକାରୀ ବର୍ଷା ଅଟେ । ଏ ଜଗତରେ ଯେତେ ଜୀବଜନ୍ତୁ ଓ ଗଛଲତା ଅଛନ୍ତି ସଭିଙ୍କୁ ମୁଁ ପାଣି ଯୋଗାଏ । ସେମାନଙ୍କ ଜୀବନ ରକ୍ଷାକରେ । ତୋର

ମଧ୍ଧ ଜୀବନ ରକ୍ଷା କରିବ । ଆଜିଠାରୁ ମୁଁ ତତେ ଜଳ ଦେଇ ବଞ୍ଚାଇ ରଖିବ । ତୁ ମୋ ଠାରୁ ପାଣି ପାଇ ଧୀରେ ଧୀରେ ବଡ ହେବୁ ।

ଏତକ ବେଳେ ସୂର୍ଯ୍ୟ ଦେବତା ମେଘ ଉହାଡରୁ ଉଙ୍କି ମାରି କହିଲେ—ଅଙ୍କୁର, ତୁ ବୋଧହୁଏ ମୋ ଉପରେ



ରାଗିଛୁ । କିନ୍ତୁ ମୋର କିଛି ଦୋଷ ନାହିଁ । ତୁ ଏବେ ନିହାତି ଶିଶୁଟିଏ । ଧୀରେ ଧୀରେ ଖରା, ବର୍ଷା, ଶୀତ ସବୁ ତୋର ଦେହସୁହା ହୋଇଯିବ । ମୋ ଠାରୁ ଆଲୁଅ ଓ ତାପ ପାଇ ତୋର ପତ୍ର ତୋ ପାଇଁ ଖାଦ୍ୟ ରାନ୍ଧି ପରଷି ଦେବ । ଆଉ ତୁ ସେହି ଖାଦ୍ୟ ଖାଇ ବଡହେବୁଁ ।

ସତକୁ ସତ ଅଙ୍କୁରଟି ଆଲୁଅ, ପାଣି ଓ ପବନ ପାଇ ଦିନ କେଇଟା ଭିତରେ ବିରାଟ ରୂପ ନେଲା । ଶାଖା, ପ୍ରଶାଖା, ପତ୍ର, ଫୁଲ ଓ ଫଳରେ ଦେହସାରା ତାର ମଣ୍ଡି ହୋଇଗଲା । ଫୁଲ ଓ ପାଚିଲା ଫଳର ମହକରେ ଚୈଇଦିଗ ମହକି ଉଠିଲା । କେତେ ଜାତିର ପଶୁ ଓ ପକ୍ଷୀ ଆସି ତା ଦେହରେ ବସା ବାନ୍ଧିଲେ । ପକ୍ଷୀମାନେ ମଧୁର ସ୍ୱରରେ ଗୀତ ଗାଇ ତାଙ୍କୁ ଶୁଣାଇଲେ ।

ସେ ମଧ୍ୟ ପଶୁ, ପକ୍ଷୀ ଓ ମଣିଷ ଜାତିର ସେବାରେ ନିଜର ସବୁକିଛି ଅଜାଡ଼ି ଦେବାକୁ ପଚ୍ଛାଇଲାନି । ସଭିଙ୍କ ମୁହଁରେ ତାର ପ୍ରଶଂସା । ସଭିଏଁ ତାକୁ କହିଲେ—ସତରେ ତୁ କେତେ ଉପକାରୀ ! ତୋ ଯୋଗୁଁ ସିନା ଆମର ଜୀବନ ରକ୍ଷାହୁଏ । ଏଣୁ ତୁ ହିଁ ଆମର ବନ୍ଧୁ ।

ସତରେ ନିଜକୁ ଉଜାଡ଼ି ଅନ୍ୟର ଜୀବନକୁ ସଜାଡ଼ି ଦେବାରେ କେତେ ଆନନ୍ଦ ମିଳିଥାଏ ! ଆଜି ତା ଜୀବନ ଧନ୍ୟ ହୋଇଛି । କିନ୍ତୁ ସେ ଯଦି ତରକୁଲା କଥା ମାନି ମାଟିତଳେ ଲୁଚି ରହିଥାନ୍ତା, ତାର ବି ତରକୁଲା ଭଳି ଦଶା ହୋଇଥାନ୍ତା । ତା' ଭଳି ସେ ବି ମାଟି ଭିତରେ ପଚି ସଡ଼ି ନଷ୍ଟ ହୋଇ ଯାଇଥାନ୍ତା ।





# ପେଟା ଅସୁର

ଛୋଟିଆ ଜୀବଟିଏ । ଜମା ଦୁଇ ତିନି ଇଞ୍ଚ ହେବ । ଦେହସାରା ତାର ଧଳା ପରି ଝାଆଁସା ବାଳ ଯାଲୁ ବାଲୁ ହୋଇ ରହିଛି । ଏଣୁ ତାକୁ ସଭିଏଁ ସଂବାଳୁଆ ବୋଲି କହନ୍ତି ।

ଦିନକର କଥା । ସଂବାଳୁଆ ଗୋଟିଏ ସଜନା ଗଛ ଉପରେ ଚଢ଼ି କଅଁଳିଆ ଶାଗୁଆ ପତ୍ରଗୁଡ଼ିକୁ ଖୁଣ୍ଟି ଖାଇବାରେ ଲାଗିଯାଇଛି । ଖାଉ ଖାଉ ସେ ଗଛଟାର ସାରା ପତ୍ର ସବୁ ଲଣ୍ଡା କରି ସାରିଲାଣି । ତଥାପି ତା ପେଟର ଭୋକ

ମେଣ୍ଟୁ ନାହିଁ । ଡଗ ଡଗ ହୋଇ ଗଛ ଡାଳ ଉପରେ ଚାଲି ଯାଉ ଯାଉ ହଠାତ୍ ସେ ନିଜକୁ ସମ୍ଭାଳି ନ ପାଇ ତଳକୁ ଖସି ପଡ଼ିଲା । ଲଥ୍‌କିନା ତଳେ ଚେଁଚ ହୋଇ ପଡ଼ିଲା । ତଳେ ପଡ଼ି ସଂବାଳୁଆ ଭୟରେ ଆଗେ ଏଣେ ତେଣେ ନଜର ପକାଇଲା । କାଳେ କେହି ଆସୁଥିବ । କାହିଁକିନା, ଆଜିକାଲିର ବଗୁଲିଆ ଟୋକାଙ୍କୁ ତାର ଭାରି ଡର । ସେମାନଙ୍କ ହାବୁଡରେ ପଡ଼ିଗଲେ, ତାର ଅବସ୍ଥା ବାର ଗଣ୍ଡା ଦି'କଡା କରିଦେବେ ।

ସତକୁ ସତ ଏତିକିବେଳେ ସେହି ବାଟଦେଇ ପାଞ୍ଚଏ ପାଠୁଆ ପିଲା ଯାଉଥିଲେ । ସେମାନଙ୍କ ଭିତରୁ ଜଣେ ପିଲାର ନଜର ସଂବାଳୁଆ ଉପରେ ଯେମିତି ପଡ଼ିଛି, ସେ ପାଟି କରି ଉଠିଲା—ହେଇ ଦେଖରେ, ପେଟା ଅସୁର, କୁମ୍ଭକର୍ଣ୍ଣଙ୍କ ଦ୍ୱିତୀୟ ଅବତାର । ରାସ୍ତା ଉପରେ ବାବୁ ଆସି କେମିତି ଟହଲ ମାରୁଛନ୍ତି ।

ତୁମେ ରାମାୟଣର କୁମ୍ଭକର୍ଣ୍ଣ ଅସୁର କଥା ଜାଣିଥିବ । ସେ ଯେମିତି ପେଟୁ, ସଂବାଳୁଆ ସେମିତି ନିହାତି ପେଟୁ । ଖାଇବାରେ ଏକଦମ୍ ଓସ୍ତାଦ । ଏତକ ଟିକିଏ ଜୀବ । କିନ୍ତୁ ଯେତେ ଖାଇଲେ ବି ତା'ର ପେଟ ମେଣ୍ଟେ ନାହିଁ । ଏଣୁ ପିଲାଏ ସଂବାଳୁଆକୁ ଥଟ୍ଟାରେ ପେଟା ଅସୁର, କୁମ୍ଭକର୍ଣ୍ଣର ଦ୍ୱିତୀୟ ଅବତାର ବୋଲି କହୁଥାନ୍ତି ।

ସଂବାଳୁଆ ପିଲାଙ୍କୁ ଦେଖି ପ୍ରାଣ ବିକଳରେ ଡ଼ଗ ଡଗ ହୋଇ ପୁଣି ସେହି ସଜନା ଗଛ ଆଡ଼କୁ ଦୌଡ଼ିଲା । କିନ୍ତୁ

ସେମାନଙ୍କ ହାବୁଡ଼ରୁ ରକ୍ଷା ମିଳୁଛି କେତେବେଳେ ? ପିଲା ଗୁଡ଼ାକ ସାଙ୍ଗେ ସାଙ୍ଗେ ଯମଦୂତ ପରି ତାକୁ ଘେରିଗଲେ ।

ଜଣେ ପିଲା ପାଟି କରି ଉଠିଲା—ଆରେ, ତମେ ସବୁ ଚାହିଁ ରହିଛ କ'ଣ ? ଧର ଏଇଟାକୁ, ଭଲ କରି ପାଠନେ ଚଖାଇ ଛାଡ଼ିବା ।

ଜଣେ ପିଲା ସଙ୍ଗେ ସଙ୍ଗେ ତାକୁ ଦୁଇଟି କାଠିରେ କେଞ୍ଚି ମାଡ଼ି ବସିଲା । ସଂବାଳୁଆ ଆଉ ହଲ୍‌ଚଲ କରି ପାରୁ ନାହିଁ କି ଚଲ୍‌ତେ ନାହିଁ । ଖାଲି ମନେ ମନେ ପିଲାଙ୍କ ବାପ ଅଜା ଚଉଦ ପୁରୁଷଙ୍କୁ ଉଦ୍ଧାରୁଥାଏ ।

ତାକୁ ଧରିଥିବା ପିଲାଟି କହିଲା—ଯାଅ, ଖଣ୍ଡିଏ ଦିଆସିଲି ଆଣ । କେମିତି ମଜା ହେବ ଦେଖିବ ।

ଦିଆସିଲି ନାଁ ଶୁଣି ସଂବାଳୁଆର ପିଳେହି ପାଣି । କାହିଁକନା, ଘିଲୁ ଯେମିତ ନିଆଁକୁ ଦେଖିଲେ ହାଲୁହାଲୁ ହୁଏ, ତାର ସେମିତ ନିଆଁକୁ ଭାରି ଡର ।

କିନ୍ତୁ କେଜାଣି କେମିତି ଗୋଟିଏ ପିଲାର ମନରେ ସଂବାଳୁଆ ପ୍ରତି ଦୟା ଆସିଲା । ସେ କହିଲା—ନା, ଭାଇ, ଏଇଟାକୁ ନିଆଁ ଧରାଅ ନାହିଁ । ଯେତେ ହେଲେ ଜୀବଟାଏ ତ । ନିଆଁରେ ପୋଡ଼ି ଜୀଅନ୍ତା କଲବଲ କରିବା କ'ଣ ଠିକ୍ ହେବ ।

ଏହା ଶୁଣି ସଂବାଳୁଆକୁ ଧରିଥିବା ପିଲାଟି ରାଗିଯାଇ କହିଲା ଏଇଟାକୁ ପୁଣି ଦୟା କ'ଣ ? ତୋର ଯଦି ଏତେ

ଦରଦ, ନେଉନୁ ଘରେ ରଖି ପୋଷା ମନେଇବୁ । ଏହା କହି ସେ ସଂବାଳୁଆକୁ ସେହି ପିଲ୍ ଉପରକୁ ଛୁଞ୍ଚି ଫିଙ୍ଗିଦେଲ୍ । 'ଆରେ, ଆରେ, ଏ କ'ଣ କହି ଡରରେ ପିଲାଟି ଦୂରକୁ ଘୁଞ୍ଚିଗଲା' । ସଂବାଳୁଆ ଛେଚ ହୋଇ ତଳେ ପଡ଼ିଲା ।

ଏହା ଦେଖି ଅନ୍ୟ ପିଲାଏ ଖୁସିରେ ତାଳି ମାରିଲେ । ଏହା ପରେ ଜଣକ ପରେ ଜଣେ ପିଲା ସଂବାଳୁଆକୁ ତଳୁ ଉଠାଇ ଅନ୍ୟ ଜଣକ ଉପରକୁ ଫିଙ୍ଗୁଥାନ୍ତି । ଏମିତ ପିଲାଏ ସଂବାଳୁଆକୁ ନେଇ ଫିଙ୍ଗା ଫିଙ୍ଗି ହୋଇ ଖେଳରେ ମାତିଗଲେ । କିନ୍ତୁ ପିଲାଙ୍କର ଖେଳକୁ ସଂବାଳୁଆର ଏଣେ କାଳ ହେଲାଣି । ସେ ଥରକୁ ଥର ତଳେ କଚଡ଼ି ହୋଇ ପଡ଼ି ଦରମରା ହୋଇ ସାରିଲାଣି ।

ତା'ର ଏ ଦଶା ଦେଖି ଜଣେ ପିଲା କହିଲା—ଆରେ, ଏଇଟା ମରିଗଲାଣି ନା କ'ଣ ? ଆଜି ଏତିକ ହୋଇଥାଉ । ଆମର ଏଣେ ପାଠ ପଢ଼ା ବେଳ ହେଲାଣି । ଚାଲ ଯିବା ।

ପିଲାଏ ଏହିପରି କଥାଭାଷା ହୋଇ ସଂବାଳୁଆକୁ ଦରମରା କରି ରାସ୍ତା କଡ଼ରେ ଫିଙ୍ଗିଦେଇ ଚାଲିଗଲେ । ସଂବାଳୁଆ ଛଟପଟ ହେଉଥାଏ । ମନେ ମନେ ଖାଲି ନିଜ ଭାଗ୍ୟକୁ ନିନ୍ଦୁଥାଏ ।

ସେଦିନର ଘଟଣା କିନ୍ତୁ ସଂବାଳୁଆକୁ ଢେର ବାଧିଲା । ସେ ଭାବିଲା—ଧିକ୍ ତା ଜୀବନ ! ଏମିତ ଅଲାଜୁକ ଜୀବନ ନେଇ ବଞ୍ଚିବା ଅପେକ୍ଷା ମରିଯିବା ଭଲ । ଭଗବାନ ସଭିଙ୍କର

ଦୁଃଖ ବୁଝୁନ୍ତନ୍ତି । ଡାକ ଶୁଣୁନ୍ତନ୍ତି । ତା' ଡାକ କାହିଁକି ନ ଶୁଣିବେ ?

ମନେ ମନେ ଏହା ଭାବି ସଂବାଲୁଆ ଘୋଷାଣ ହୋଇ ଯାଇ ବାଟ କଡରେ ଥିବା ଗୋଟିଏ ଗଛ ଉପରେ ଚଢ଼ିଲା । କିନ୍ତୁ ତା ମନରେ ଶଙ୍କା ପଶିଲା । କାଳେ ପୁଣି କେତେ-ବେଳେ ତାକୁ କିଏ ଦେଖିନେବ । ଧରିନେଇ ନାହିଁ ନ ଥିବା ହଟହଟା କରିବ । ଏଣୁ ସେ ଭାବି ଭାବି ଗୋଟିଏ ନୂଆ ଉପାୟ ଠିକ୍ କଲା । ତ ପାଟିରୁ ଝରୁଥିବା ଅଠାଳିଆ ଲାଳ ସାହାଯ୍ୟରେ ସେହି ଗଛ ଡାଳରେ ଗୋଟିଏ ଖୋଷା ତିଆରି କଲା । ଭାବିଲା, ତାରି ଭିତରେ ସେ ନିଜକୁ ଲୁଚାଇ ରଖିବ । ଆଉ କେହି ଜାଣି ପାରିବେ ନାହିଁ । ତା ପରେ ସେ ସେହି ଖୋଷା ଭିତରେ ରହି ଏକ ମନ ଏକ ଲୟରେ ଭଗବାନଙ୍କୁ ଡାକିବ ।

ରାମାୟଣରେ ଲେଖା ଅଛି । ତ୍ରେତୟା ଯୁଗରେ ଦସ୍ୟୁ ରତ୍ନାକର ନାମରେ ଜଣେ ଭୟଙ୍କର ଡକାୟତ ଥିଲା । ସେ ଏମିତି ନ ଖାଇ ନ ପିଇ କୁଆଡେ ଷାଠିଏ ହଜାର ବର୍ଷଯାଏଁ ତପକଲା । ଶେଷରେ ଭଗବାନ ତା ଡାକ ଶୁଣିଲେ । ଦସ୍ୟୁ ରତ୍ନାକର ଭଗବାନଙ୍କ କୃପାରୁ ମହର୍ଷି ବାଲ୍ମୀକି ପାଲଟିଗଲା ।

କିନ୍ତୁ ସଂବାଲୁଆକୁ ଷାଠିଏ ହଜାର ବର୍ଷଯାଏଁ ତପ କରିବାକୁ ପଡ଼ିଲା ନାହିଁ । ମାତ୍ର ଏକୋଇଶି ଦିନ ପୂରିଲା ବେଳକୁ ଭଗବାନଙ୍କ ଆସନ ଦୋହଲି ଗଲା । ଭଗବାନ ସଂବାଲୁଆ ପାଖରେ ଉଭା ହୋଇ କହିଲେ—ସଂବାଲୁଆ, ମୁଁ ତୋର ଭକ୍ତିରେ ସନ୍ତୁଷ୍ଟ ହୋଇଛି । କି ବର ମାଗୁଛୁ, ମାଗ ।

ସଂବାଳୁଆ ପ୍ରଥମେ ବିଶ୍ୱାସ କରିପାରିଲା ନାହିଁ । କିନ୍ତୁ ଆଖି ଖୋଲି ଦେଖିଲା, ସତରେ ଭଗବାନ ତା ଆଗରେ ଠିଆ ହୋଇ ବର ଯାଚୁଛନ୍ତି ।



ସେ ଭକ୍ତିରେ ଗଦ୍ ଗଦ୍ ହୋଇ କହିଲା—ପ୍ରଭୁ, ଆପଣ ଯଦି ସତରେ ମୋ ଉପରେ ସନ୍ତୁଷ୍ଟ ହୋଇଛନ୍ତି, ତେବେ ମୋର ଏ ରୂପ ଓ ଗୁଣ ବଦଳାଇ ଦିଅନ୍ତୁ । ମୋତେ ଭଲ ବୁଦ୍ଧି ଦିଅନ୍ତୁ ।

ଭଗବାନ କହିଲେ—ସେମିତି ହେଉ । ସଂବାଳୁଆକୁ ବର ଦେଇ ଭଗବାନ ଉଭେଇ ଗଲେ ।

ତା ପରେ କଣ ହେଲା ଜାଣିଛ ? ସତକୁ ସତ ସଂବାଲୁ ଆଉ ଆଗର ସେହି ଅଫନା ରୂପ ଓ ଗୁଣ ବଦଳି ଗଲା । ସେ ରଙ୍ଗ ରଙ୍ଗିଆ ସୁନ୍ଦର ପ୍ରଜାପତିର ରୂପ ନେଇ ଖୋଷା ଭିତରୁ ପଦାକୁ ବାହାରି ପଡ଼ିଲା ।

ଯେଉଁ ପିଲାଏ ଦିନେ ତାକୁ ଦୁର୍ ଦୁର୍ ମାର୍ ମାର୍ କରି ଛି ଛାକର କରୁଥିଲେ, ତାର ଏ ନୂଆ ରୂପ ଦେଖି ଅତି ସରାଗରେ ତାକୁ ପାଖକୁ ଡାକିଲେ—

ଆ' ପ୍ରଜାପତି ପାଖରେ ବସ,
ଖାଇବାକୁ ଦେବୁ ଫୁଲର ରସ ।
ଆ'ରେ ସଂଗାତ, ଆ'ରେ ମିତ,
ହସି ଖେଳି ଆମେ ଗାଇବା ଗୀତ ।





## ଥିଲେ ଅବା ଥାଉ ରୂପ ଅପାର

ଖରା, ବର୍ଷା, ଶୀତ ଓ କାକର ସହି ପଡ଼ିଆରେ ପଡ଼ିଥିଲା ମାଟି । ତାକୁ କେହି ପଚାରୁ ନଥିଲେ । ଦିନେ କୁମ୍ଭାର ତାକୁ ପଡ଼ିଆରୁ ସାଉଁଟି ଆଣିଲା । ଘରକୁ ଆଣି ମାଟିକୁ ଭଲଭାବେ ଧୁଆ ଧୋଇ କରି ସଫାକଲା । ତାକୁ ନେଇ ତା ଘର ଚଟାଣ ଉପରେ ରଖିଲା । ପାଣି ଆଣି ତା ଦେହରେ ଢାଳିଲା । ତା ପରେ ତାକୁ ଗୋଡରେ ଦଳା ଚକଟା ଆରମ୍ଭ କରିଦେଲା ।

ମାଟିକୁ ଭାରି ବାଧିଲା । ସେ କହିଲା – ବାପା ହେ, ଧୀରେ ଧୀରେ ଗୋଡ ପକାଅ । ମୋତେ ଭାରି କଷ୍ଟ ହେଉଛି ।

କୁମ୍ଭାର କହିଲା—କଷ୍ଟ କଲେ କୃଷ୍ଣ ମିଳେ । ଏଣୁ ଟିକେ ସହିଯା' ମା' । ସହିଲେ ସିନା ବଡ ହେବୁ ।

ଦଳା ଚକଟା ସରିଲା । କୁମ୍ଭାର ମାଟିକୁ ନେଇ ତା ଶାଳକୁ ଗଲା । ଶାଳରେ ଚକ ଉପରେ ତାକୁ ବସାଇ ଚକ ଘୂରାଇଲା । ଚକ ଘୂରୁଥାଏ, ମଝିରେ ମଝିରେ ତା ଦେହକୁ ଛିଣ୍ଡା ଚିମ୍ପୁଡ଼ା କରୁଥାଏ । ଥରକୁ ଥର ଚାପୁଡ଼ା ମାରି ସଜାଡ଼ି ଦେଉଥାଏ ।

ମାଟି କହିଲା—ବାପା, ମୁଁ କି ଦୋଷ କଲି ? ମୋତେ ଏମିତି ଛିଣ୍ଡା ଚିମ୍ପୁଡ଼ା କରି ଚାପୁଡ଼ା ମାରୁଛ କାହିଁକି ?

କୁମ୍ଭାର କହିଲା—ବୁଝିଲୁ ମା', ପିଲାଙ୍କୁ ନ ଡରାଇଲେ ସେମାନେ ଅବାଟରେ ଯାଆନ୍ତି । ଏଣୁ ମୁଁ ଯଦି ତତେ ଏତିକବେଳେ ନ ସଜାଡ଼ିବି, ତୁ ଅବାଗିଆ ହୋଇଯିବୁ ।

କିଛି ସମୟ ପରେ କୁମ୍ଭାର ମାଟିକୁ ନିଆ ଛାଞ୍ଚ ଦେଇ ଚକା ଉପରୁ ତଳକୁ ଓହ୍ଲାଇଲା । ତା ପରେ ତାକୁ ନେଇ ନିଆଁ ଉପରେ ରଖିଲା ।

ମାଟି ବିକଳରେ ରଡ଼ି ଛାଡ଼ିଲା—ଓଃ, ମରିଗଲି, ବାପା, ପୋଡ଼ିଗଲି । ମୋ ଦେହ ସାରା ଜଳି ପୋଡି ଭାରି କଷ୍ଟ ହେଲାଣି । ମୋତେ ଚଞ୍ଚଳ ଏ ନିଆଁରୁ ବାହାର କର ।

କୁମ୍ଭାର କହିଲା—ଆଉ ଟିକିଏ ସହିଯା' ମା' । ଦେଖିବୁ, ନିଆଁରେ ତୋ ଦେହ କେମିତି ଟାଣ ଆଉ ମଜବୁତ୍ ହେବ ।

କିନ୍ତୁ ଏହା ତୋର ଶେଷ ପରୀକ୍ଷା । ଏହା ପରେ ମୁଁ ତତେ ଜମା କଷ୍ଟ ଦେବନି ।

କଅଁଳା ପିଲାଙ୍କୁ ସେକିଲା ଭଳି କୁମ୍ଭାର ମାଟି ଛାଞ୍ଚକୁ ଭଲଭାବେ ନିଆଁରେ ସେକି ପଦାକୁ କାଢ଼ିଲା । ତାକୁ ଚଟାଣ ଉପରେ ରଖି କହିଲା—ସାବାସ୍ ! ଏଇଥର ଦେଖ, ତୋ ଦେହେରି କେମିତି ବାଗ ହୋଇଛି ।

ମାଟି ନିଜକୁ ନିଜେ ଦେଖି ଚିହ୍ନି ପାରିଲାନି । ସତରେ ଆଜି ତା ରୂପ ବଦଳି ଯାଇଛି । ଦେହସାରା ତାର ନାଲି ଟୁକ୍ ଟୁକ୍ ଦିଶୁଛି । ସେ ଖୁସି ହୋଇ କହିଲା—ସତରେ, ବାପା, ଆଜି ମୁଁ ଭାରି ସୁନ୍ଦର ଦେଖାଯାଉଛି ।

କୁମ୍ଭାର କହିଲା—ହଁ, ମା' ଏଇଥି ପାଇଁ ତ ମୁଁ ତତେ ଏତେ କଷ୍ଟ ଦେଲି । ଏଣିକି ତୁ ଏ ଘରେ ବେଶ୍ ଆରାମ୍‌ରେ ରହିବୁ ।

କୁମ୍ଭାର ମାଟି ହାଣ୍ଡିକୁ ନେଇ ସେହି ଘର କୋଣରେ ସାଇତି ରଖିଲା । ଏମିତି କେତେ ଦିନ ଗଲା । ମଝିରେ ମଝିରେ ଆସି ତାକୁ ଗେଲରେ ଆଉଁସି ଦିଏ । ଶୋଇ ପଡ଼ିଥିଲେ ତା ଦେହରେ ଟିପମାରି ତାକୁ ଉଠାଇ ଦିଏ । ଭଲମନ୍ଦ କଥା ପଚାରି ବୁଝିଯାଏ ।

ଦିନକର କଥା । କେହି ଜଣେ ଦାଣ୍ଡ ଦୁଆରେ ଆସି ଡାକିଲା— ବେହେରେ, ଘରେ ଅଛ ?

ପାଟି ଶୁଣି କୁମ୍ଭାର ଦୌଡ଼ିଗଲା । ମାଟିହାଣ୍ଡି ମଧ୍ୟ ଘର କୋଣରେ ଥାଇ କାନ ଡେରିଥାଏ ।

ଲୋକଟି ପଚାରିଲା—ହାଣ୍ଡି ଅଛି ? ଭଲ ସୁନ୍ଦର ହାଣ୍ଡିଟିଏ ଦରକାର । ଧନୀ ଲୋକଙ୍କ ଘରକୁ ଯିବ ।

କୁମ୍ଭାର କହିଲା—ହଁ, ଅଛି । ଏକଦମ୍ ମଜବୁତ୍ ଆଉ ଭାରି ବଢ଼ିଆ ହାଣ୍ଡି । କିନ୍ତୁ ଦାମ୍ ଟିକିଏ ଅଧିକା ପଡ଼ିବ ।

ଲୋକଟି ପଚାରିଲା—କେତେ ଦାମ୍ ପଡିବ ? କୁମ୍ଭାର କହିଲା—ତିନି ଟଙ୍କା ।

ଲୋକଟି କହିଲା—ହେଉ । ମୁଁ ଟଙ୍କା ନେଇ ଆସୁଛି, ହାଣ୍ଡି ନେଇଯିବି ।

ଲୋକଟି ଚାଲିଗଲା । କୁମ୍ଭାର ଘର ଭିତରକୁ ଲେଉଟି ଆସି ଦେଖେ ତ ମାଟିହାଣ୍ଡି ବାହୁନି ବାହୁନି କାନ୍ଦୁଛି—

କେତେ ଯତନରେ ବଢ଼ାଇଥିଲ,
ବାପା ହେ, ମୋର ।
ଆଜ କିଆଁ ମୋତେ ପର କରିଲ,
ବାପା ହେ, ମୋର ।
ତମ ପାଇଁ କି ମୁଁ କଣ୍ଟା ହୋଇଲି,
ବାପା ହେ, ମୋର ।
ସେଥିପାଇଁ ଘରୁ ତଡ଼ା ଖାଇଲି,
ବାପା ହେ ମୋର ।

ଏମିତ କେତେ କଣ କାନ୍ଦୁନ ହୋଇ ମାଟି ହାଣ୍ଡି କାନ୍ଦୁଥାଏ ।

ଏହା ଦେଖି କୁମ୍ଭାର କରେ କଣ ? ତା ପାଖକୁ ଯାଇ ତାକୁ ବୁଝାଇଲା—କାନ୍ଦନା ଲୋ, ମା' କାନ୍ଦନା । କାନ୍ଦଲେ କଣ ହେବ ? ତୋ ଭାଗ୍ୟରେ ତ ଏଇଆ ଲେଖାଅଛି । ମୁଁ ବା କଣ କରିବ, କହିଲୁ ? ଏ ତ ମୋର ବେଉସା । ହେଲେ ତୁ ମତେ ଛାଡ଼ି ପର ଘରକୁ ଯାଉଛୁ ବୋଲି ଦୁଃଖ କରୁଛୁ ସିନା, ସେହି ଘର ଏକା ତୋର ସଂସାର । ମନେରଖ, ମା', ସେ ଘରେ କାହାରି ସହିତ କମା ଝଗଡା ଝାଟି କରିବୁନି । ଯେତେ ଆଘାତ ଅପମାନ ମଥା ପାତି ସହିଯିବୁ । ତେବେ ଯାଇ ମଙ୍ଗଳ ହେବ । ସମସ୍ତେ ତତେ ଆଦର କରିବେ ।

ଏମିତ କୁମ୍ଭାର ତାକୁ ବହୁତ ପ୍ରକାରେ ବୁଝାଇ ଶୁଝାଇ ତୁନି କରାଇଲା ।

କିଛି ସମୟ ପରେ ଧନୀ ଲୋକଙ୍କ ଚାକର ଆସିଲା । କୁମ୍ଭାରକୁ ଟଙ୍କା ଦେଇ ମାଟି ହାଣ୍ଡିକୁ ସାଙ୍ଗରେ ନେଇ ଚାଲିଗଲା ।

ଚାକର ମାଟି ହାଣ୍ଡି ନେଇ ଧନୀ ଲୋକଙ୍କ ବୈଠକ ଘରର ଗୋଟିଏ କୋଣରେ ରଖିଦେଇ ନିଜ କାମରେ ଚାଲିଗଲା ।

ମାଟି ହାଣ୍ଡି ଧନୀ ଲୋକଙ୍କ ଘରକୁ ଆସିବାର ଦୁଇ ତିନି ଦିନ ହେଲାଣି । ହେଲେ କେହି ଆସି ତାକୁ କିଛି ପଚାରୁ

ନାହାନ୍ତି କି ତା କଥା ବୁଝିନାହାନ୍ତି । ସେ ସୁନାନାଳୀ ବୋହୂପର ମୁଣ୍ଡ ପୋତି ସେହି ଘର କଣରେ ବସିଥାଏ । ହଠାତ ସେ କଣ ଭାବି ମୁଣ୍ଡଟେକି ଚାରିଆଡକୁ ଚାହିଁଲା । ଦେଖିଲା, ସେହି ଘରେ ନାନା ରକମର ସୁନ୍ଦର ସୁନ୍ଦର ଦାମିକା ଜିନଷ



ସଜା ହୋଇ ରହିଛି । କାଚ ଆଲମାରୀ ଥାକରେ ଚକମକ ସୁନା ପାତ୍ର ଥାଇ ତାରି ଆଡକୁ ଚାହିଁ ହସୁଛି । ସେ ହସୁଥିବା ଦେଖି ମାଟିହାଣ୍ଡି ତାକୁ ପଚାରିଲା – ତମେ ମତେ ଚାହିଁ ହସୁଚ କାହିଁକି ?

ସୁନାପାତ୍ର କହିଲା—ହିଁ, ତୋର ଦୁଃଖ ଦେଖି ହସୁଛି । ସତରେ ତୁ କେତେ ହୀନ କପାଳୀ ! ନା ତୋର ରୂପ ଅଛି,

ନା ଗୌରବ ଅଛି ! ଦୁଇଦିନ ହେଲା ଆସିଲୁଣି ଯେ, ତତେ କେହି ଆଉ ଆଖିରେ ବି ଚାହୁଁ ନାହାଁନ୍ତି । ମତେ ଦେଖ, ମୁଁ କେତେ ଭାଗ୍ୟବାନ ! ମୋର ରୂପ ଯେମିତି, ଗୌରବ ବି ସେମିତି । ମାଲିକ ମତେ କେଡେ ଯତ୍ନରେ ସାଇତି ରଖିଛନ୍ତି । ନିତି ଆସି ମୋର ଭଲମନ୍ଦ କଥା ବୁଝି ଯାଆନ୍ତି ।

ସୁନା ପାତ୍ରର କଥା ମାଟି ହାଣ୍ଡିକୁ ଡେ଼ର୍ ବାଧିଲା । କିନ୍ତୁ ସେ କିଛି ଜବାବ ଦେଲାନି । ଖାଲି ଦୀର୍ଘ ନିଃଶ୍ୱାସଟିଏ ଛାଡ଼ି ଚୁପ୍ ରହିଲା ।

କିଛି ସମୟ ପରେ ଘରର ଚାକର ଆସିଲା । ତା ଦେହଟିରେ ପାଣି ଭର୍ତ୍ତି କରିଦେଇ ଚାଲିଗଲା ।

ମାଟିହାଣ୍ଡି ଭାବିଲା—ଯା' ହେଉ, ଧନୀ ଲୋକଙ୍କ ଘରର ଲୋକେ ତାକୁ ଭୁଲି ନାହାନ୍ତି ।

ତା ପରଦିନ ଧନୀ ଲୋକଙ୍କ ଘରକୁ କେତେଜଣ ଅତିଥି ଆସିଲେ । ଖରାଦିନ । ପୁଣି ସେମାନେ ଦୂର ବାଟରୁ ଆସି ଥକି ପଡ଼ିଥିଲେ । ଘରେ ପହଞ୍ଚି ପହଞ୍ଚି ସେମାନେ ପାଣି ଖୋଜିଲେ । ଧନୀ ଲୋକ ଜଣକ ସୁନା ପାତ୍ରରୁ ପାଣି ନେଇ ଅତିଥିମାନଙ୍କୁ ଦେଲେ । କିନ୍ତୁ ଅତିଥିମାନେ କହିଲେ— ଆମକୁ ମାଟି ପାତ୍ରର ପାଣିଦିଅ । ମାଟି ପାତ୍ରର ପାଣି ଭାରି ଥଣ୍ଡା । ଆମର ଥଣ୍ଡାପାଣି ଦରକାର ।

ଅତିଥିମାନଙ୍କ କଥା ଶୁଣି ସୁନା ପାତ୍ରର ମୁହଁ ପୋଡ଼ିଗଲା । ସେ ଲାଜରେ ମୁଣ୍ଡ ତଳକୁ ପୋତିଦେଲା । ମାଟି ହାଣ୍ଡିର ମୁହଁ ଖୁସିରେ ଚମକି ଉଠିଲା ।

ସେହିଦିନ ଠାରୁ ମାଟିହାଣ୍ଡି ସେହି ପରିବାରର ସେବାରେ ଦିନରାତି ଖଟୁଥାଏ ।

ଏହାର କିଛିଦିନ ପରେ ସେହି ଧନୀ ଲୋକଙ୍କ ପୁଅ ବାହାହେଲା । ବିବାହ ଦିନ ରାତି ନ ପାହୁଣୁ ମାଟି ହାଣ୍ଡିକୁ ଖୋଜା ପଡ଼ିଲା । ଘରର ସାତଜଣ ସାଧବା ବୋହୁ ପାଟଶାଢ଼ୀ ପିନ୍ଧି, ଶଙ୍ଖ ବଜାଇ, ହୁଳହୁଳି ଦେଇ ଶୁଭ ଅନୁକୂଳରେ ନଈକୁ ଗଲେ । ସାଙ୍ଗରେ ମାଟି ହାଣ୍ଡିକୁ ବି ନେଇଥାନ୍ତି । ମାଟି ହାଣ୍ଡିରେ ସାତହାଣ୍ଡି ପାଣି ଆଣି ପୁଅକୁ ଗାଧୁଆ ପାଧୁଆ କରି ବନ୍ଦାପନା କଲେ । ଖାଲି ଏତିକି ନୁହେ । ବୋହୁ ଆସିବା ଆଗରୁ ମାଟିହାଣ୍ଡି ଦେହରେ ହଳଦି, ସିନ୍ଦୂର ମାଖି ଘର ଆଗରେ ସଜାଇ ରଖିଲେ । ତା ଦେହରେ ପାଣି ଭରିକଲେ । ଆମ୍ବପତ୍ର ଓ ପଇଡ ରଖିଲେ । ଠିକ୍ ସେହିଭଳି ବିବାହ ବେଦୀରେ ମଧ୍ୟ ମାଟିହାଣ୍ଡିର ଅନେକ କାମ । ଏମିତି ଦିନସାରା ମାଟିହାଣ୍ଡିକୁ ଜମା ଫୁରୁସତ୍ ନଥାଏ । ଖଟି ଖଟି ସେ ଥକି ପଡ଼ିଥିଲା । ବିବାହ ଓ ଭୋଜି ଖିଆ ପିଆ ଇତ୍ୟାଦି ସରିଲା ବେଳକୁ ତା ଆଖିକୁ ନିଦ ଘୋଟି ଆସିଥାଏ । ହଠାତ୍ ସେ ସ୍ୱପ୍ନରେ ଦେଖିଲା, ତା ବାପା ତାକୁ କହୁଛନ୍ତି—ଦେଖିଲୁ ତ ମା', ମୋ କଥା ମାନିଲୁ । ସବୁ ଦୁଃଖ ଅପମାନ ସହି ପରିବାରର ସେବାରେ ଖଟିଲୁ । ତେବେ ଯାଇ ସିନା ସଭିଏଁ

ତତେ ଆଦର କଲେ । ତୋର ଗୌରବ ବଢ଼ିଲା । ତୁ ସୁନା ପାଏର କଥା ଶୁଣି ଦୁଃଖ କରୁଥିଲୁ । କିନ୍ତୁ ଆଜ ଦେଖିଲୁ ତ, ଏତେ ବଡ଼ ଉତ୍ସବରେ କେହ୍ହ ତାକୁ ପଚ୍ଚାରଲେନ । ଆଲୋ, ତା ସୁନ୍ଦର ପଣ କେବଳ ଆଲମାରୀ ଭିତରେ ବନ୍ଦୀ ହୋଇ ରହିବା ପାଇଁ ସିନା । ଏଣୁ ମନେରଖ—

ଥିଲେ ଅବା ଥାଉ ରୂପ ଅପାର,
ଗୁଣ ଯଦି ନାହିଁ ସବୁ ଅସାର ।

ରୂପ ଥିଲେ କଣ ହେବ ? ଗୁଣ ନ ଥିଲେ ତାକୁ କେହ୍ହ ପଚ୍ଚାରନ୍ତ ନାହିଁ । ତା ଜୀବନ ଧିକ୍ !





# ଗର୍ବର ଫଳ

ସାପଭଳି ବଙ୍କା ଟଙ୍କା ରାସ୍ତାଟିଏ ଜଙ୍ଗଲ ଆଡକୁ ଲମ୍ବି ଯାଇଛି । ରାସ୍ତାକଡରେ ଶିମିଳି ଗଛଟିଏ ଆକାଶକୁ ମୁଣ୍ଡଟେକି ଠିଆ ହୋଇ ରହିଛି । ଚାହିଁଲେ ଆଖି ପାଉ ନାହିଁ । ନିତି କେତେ ନାଇଁ କେତେ ଲୋକ ସେହି ବାଟ ଦେଇ ଜଙ୍ଗଲକୁ ଯିବା ଆସିବା କରନ୍ତି । ହାଲିଆ ହୋଇ ବାଟୋଇମାନେ ସେହି ଗଛ ଛାଇରେ ଥକ୍କା ମାରନ୍ତି । ବାଟୋଇମାନଙ୍କ ପାଇଁ ଶିମିଳି ଗଛ ଏକା ସାହାଭରସା । କାହିଁକିନା, ଆଖ ପାଖରେ ଅନେକ ଛୋଟ ଛୋଟ ଗଛ ଓ କଣ୍ଟାବୁଦା ଅଛି । କିନ୍ତୁ ଶିମିଳି ଭଳି ଗଛଟିଏ ଦେଖିବାକୁ ମିଳୁ ନ ଥିଲା । ଖାଲି ସେତିକି ନୁହେଁ, ଅନେକ ପଶୁ ପକ୍ଷୀ

ମଧ୍ଯ ତା ଦେହରେ ବସା ବାନ୍ଧି ରହନ୍ତି । ଏଇଥିପାଇଁ ଶିମିଳି ମନରେ ଭାରି ଗର୍ବ ଥାଏ । ବେଳେ ବେଳେ ସେ ଆଖ ପାଖର ଛୋଟ ଛୋଟ ଗଛଲତା ଓ ବୁଦାମାନଙ୍କୁ ଟିହିଁ ନାକ ଟେକେ । ନିତ ଅନ୍ୟମାନଙ୍କ ଆଗରେ ଫୁଲେଇ ହୋଇ ନିଜର ବଡ଼ାଇ ବଖାଣି ହୁଏ ।

ଦିନକର କଥା । ସେହି ବାଟ ଦେଇ ଜଣେ ସାଧୁ ଆସିଲେ । ସେ ଥକା ମାରିବା ପାଇଁ ଶିମିଳି ଗଛ ଛାଇରେ କିଛି ସମୟ ବସିଲେ । ଶିମିଳି ସାଧୁଙ୍କୁ ଦେଖି ନିଜର ବଡ଼ାଇ ବଖାଣିବାରେ ଲାଗିଲା । ସାଧୁ ମନେ ମନେ ହସିଲେ । କାରଣ ଶିମିଳିର ମୁଁକାର ତାଙ୍କୁ ଜମା ପସନ୍ଦ ଲାଗିଲା ନାହିଁ । ସେ ଗଲାବେଳେ ତାକୁ କେତେକ ନୀତି ଉପଦେଶ ଶୁଣାଇ ନିଜ ରାସ୍ତା ଧରିଲେ ।

ଯାହାର ସ୍ୱଭାବ ଯିମିତି । ଗୁରୁ କହିଲେ କି ତାହା ବଦଳିବ ? ସାଧୁଙ୍କ ନୀତି ଉପଦେଶକୁ ଶିମିଳି ଜମା କାନ ଦେଲା ନାହିଁ ।

ଆଉ ଦିନକର କଥା । ଶିମିଳି ଗଛ ଦେଖିଲା, ପବନ ଦେବତା ଆକାଶରେ ତାରି ଆଡ଼କୁ ଉଡ଼ି ଆସୁଛନ୍ତି । ସେ ତ ନିଜକୁ ସବୁବେଳେ ଭାରି ବଡ଼ ବୋଲି ମନେ କରୁଥାଏ । ପବନ ଦେବତାଙ୍କୁ ଦେଖି ସେ ମନେ ମନେ ଭାବିଲା—ଏ

ପବନର ଡର ବଡ଼ାଇ। ତାକୁ ତଳେ ହେଲେ ଖାତର କରୁନାହିଁ। ନିତ ତା ମୁଣ୍ଡ ଉପରେ ଉଡ଼ିଯାଉଛି। ଆଜି କିନ୍ତୁ ସେ ପବନକୁ ବାଟ ଛାଡ଼ିବ ନାହିଁ। ଦେଖିବା ପବନର ତାକତ୍ କେତେ ?

ଏହା ଭାବି ସେ ନିଜର ଶାଖା ପ୍ରଶାଖାଗୁଡ଼ିକୁ ମେଲି ପବନ ଦେବତାଙ୍କ ବାଟ ଓଗାଳିଲା।



ଦୂରରୁ ପବନ ଦେବତା ଏହା ଦେଖି ଶିମିଳର ମନ କଥା ବୁଝି ପାରିଲେ। ଦେବତାମାନେ ତ କାହାରି ମୁଁ କାର ସହି ପାରନ୍ତି ନାହିଁ। ଶିମିଳର ଗର୍ବ ସହନ୍ତେ ଅବା କିମିତି ?

ଶିମିଳକୁ ଉଚିତ ଶାସ୍ତି ଦେବା ପାଇଁ ସେ ମନେ ମନେ ଠିକ୍ କଲେ । ସଙ୍ଗେ ସଙ୍ଗେ ସେ ନିଜର ବେଗ ବଢ଼ାଇ ଦେଲେ । ଅତି ଜୋରରେ ଉଡ଼ି ଆସି ଶିମିଳକୁ ଧକ୍କାଟାଏ ଦେଇ ଆଗକୁ ବଢ଼ିଗଲେ । ପବନ ଦେବତାଙ୍କ ଆଗରେ ଶିମିଳ କେତେ ଛାର ! ତାଙ୍କ ଠାରୁ ଧକ୍କା ଖାଇ ଆଖି ପିଛୁଳାକେ ସେ ଚେଙ୍ଗ ଲେଉଟିଲା ଭଳି ଲେଉଟି ପଡ଼ିଲା । ସେତିକି ବେଳେ ତାର ଗଡ଼ରେ ଗୃହଆଡ ଅଶ୍ରୁ ଉଠିଲା । ଗୃହ୍ମ ଗୃହ୍ମ ତାର ଜୀବନ ଦୀପଟି ଦପ୍‌କିନ ଲିଭିଗଲା ।

ଏହି ଘଟଣାର କିଛି ଦିନ ପରେ ପୁଣି ସାଧୁଜଣକ ସେହି ବାଟେ ଦେଇ ଫେରିଲେ । ସେ ଶିମିଳର ଏହି ଦଶା ଦେଖି ଆଖ 'ପାଖର ଗଛ ଓ କଣ୍ଟା ବୁଦାମାନଙ୍କୁ ଏହାର କାରଣ ପଚାରିଲେ । ଗଛ ଓ ବୁଦାମାନେ ସାଧୁଙ୍କୁ ସବୁ କଥା ବୁଝାଇ କହିଲେ ।

ସାଧୁ ପଚାରିଲେ—ଶିମିଳ ଏତେବଡ଼ ଗଛ ପବନ ଦେବତାଙ୍କ ଧକ୍କା ସହି ନ ପାରି ଟଳି ପଡ଼ିଲା । ଅଥଚ ତମମାନଙ୍କର କିଛି କ୍ଷତି ହେଲା ନାହିଁ କିମିତି ?

ଛୋଟ ଛୋଟ ଗଛ ଓ ବୁଦାମାନେ କହିଲେ—ଶିମିଳ ନିଜର ମୁଁ କାର ଯୋଗୁଁ ଏହି ଫଳ ପାଇଲା । କିନ୍ତୁ ଆମେ ତ

କେବେ ମନରେ ବଡାଇ କରୁନାହୁଁ । ଶ୍ରେଷ୍ଠ ବୋଲି ଆମ ମନରେ ଜମା ଦୁଃଖ ନାହିଁ । ଭଗବାନ ଆମକୁ ଯାହା ଦେଇଛନ୍ତି ସେଥିରେ ଆମେ ଖୁସି । ନିତ ପବନ ଦେବତା ଆସନ୍ତି । ଆମେ ତାଙ୍କୁ ଦେଖି ଭକ୍ତିରେ ମୁଣ୍ଡ ନୁଆଁଇ ଦେଉ । ଏଣୁ ଆମ ପ୍ରତି ସେ ଖୁସି ହୁଅନ୍ତି । ଆମର ଜମା କ୍ଷତି କରନ୍ତି ନାହିଁ ।

ସାଧୁ କହିଲେ—ସାବାସ୍ ! ତମଠାରୁ ଅନ୍ୟମାନେ ଏହି ଗୁଣ ଶିଖିବା ଉଚିତ । କାରଣ, ଯେ ଯେତେ ବଡ ହେଉନା କାହିଁକି, ମୁଁକାର କରିବା ଠିକ୍ ନୁହେଁ । ଧୀର ଓ ବିନମ୍ର ଗୁଣ ଦ୍ୱାରା ଦେବତାମାନଙ୍କ ମନକୁ ମଧ୍ୟ ଜୟ କରିହୁଏ । କିନ୍ତୁ ମୁଁକାର ଦ୍ୱାରା କିଛି ହିଁ କ୍ଷତି ହୁଏ ।

